# ଶୈଶବ-ଗୀତିକା



ବାଲେଶ୍ୱର ଜିଲ୍ଲାସ୍ଥ ପାଲଦା ଗୁରୁ ଟ୍ରେନିଂ ସ୍କୁଲର

ହେଡ଼ପଣ୍ଡିତ ମୁନସୀ ଜାନ ଖାଁ ସାହିବଙ୍କ

ରଚିତ ଓ ପ୍ରକାଶିତ ।

ଦ୍ୱିତୀୟ ସଂସ୍କରଣ ।

PRINTED BY S. N. MOHAMMAD
AT THE EDWARD PRESS
Cuttack, 1915

ମୂଲ୍ୟ ଠ ୦/୨ ଛଅପଇସା ମାତ୍ର ।

# ଭୂମିକା ।

ନୂତନ ଶିକ୍ଷାପଦ୍ଧତି ଅନୁସାରେ ପ୍ରାଥମିକ ବିଦ୍ୟାଳୟମାନଙ୍କର ଶିଶୁସୋପାନ ଦ୍ୱୟ ନିମନ୍ତେ, ଖଣ୍ଡିଏ ସୁଲଳିତ, ସୁବୋଧ ଓ କ୍ଷୁଦ୍ର କ୍ଷୁଦ୍ର ଗୀତବିଶିଷ୍ଟ ସଙ୍ଗୀତ ପୁସ୍ତକ ଏକାନ୍ତ ଅବଶ୍ୟକ ଥିବାର ଅନୁଭବ କରି ତଦ୍ରୂପ ଖଣ୍ଡିଏ ପୁସ୍ତକ ଲେଖିବା ପାଇଁ ବହୁଦିନରୁ ଆକାଂକ୍ଷୀ ହୋଇଥିଲି । ବିଭୁ କୃପାରୁ ଗତବର୍ଷ ସେ ଆକାଂକ୍ଷା ଚରିତାର୍ଥ ହୋଇ ପାଣ୍ଡୁଲେଖ୍ୟରେ ସୀମାବଦ୍ଧ ହେଲା; ତହିଁରେ ନୈତିକ, ପ୍ରାକୃତିକ ଓ ବ୍ୟାବହାରିକ ଅନେକ ଗୁଡ଼ିଏ ଗାଥା ଅଙ୍ଗଚାଳନାର ସଙ୍ଗୀତ ସହ ସନ୍ନିବିଷ୍ଟ ଥିଲା । ଉକ୍ତ ପୁସ୍ତକ ଉତ୍କଳର ବରେଣ୍ୟ କବି, ଉତ୍କଳ-ସାହିତ୍ୟସେବୀର ସମୁଜ୍ଜ୍ୱଳ ଅଦ୍ୱିତୀୟ ରତ୍ନ ଓ ଓଡ଼ିଶା ବିଭାଗସ୍ଥ ବିଦ୍ୟାଳୟ ସମୂହର ଭୂତପୂର୍ବ ଇନ୍‌ସ୍ପେକ୍ଟର ଶ୍ରୀଲ ଶ୍ରୀଯୁକ୍ତ ରାୟ ମଧୁସୂଦନ ରାଓ ବାହାଦୁର ମହୋଦୟ ଯେଉଁ ମନ୍ତବ୍ୟ ପ୍ରକାଶ କରିଥିଲେ ତହିଁରେ ପୁସ୍ତକ ଖଣ୍ଡିକ ଶିଶୁମାନଙ୍କ ନିମନ୍ତେ ଉପଯୁକ୍ତ ବୋଲି ପ୍ରକାଶିତ ହୋଇଥିଲା । ମାତ୍ର ଦୁରଦୃଷ୍ଟ ନିବନ୍ଧନ ପୁସ୍ତକ ଖଣ୍ଡିକ ମୁଦ୍ରିତ ହେବା ପୂର୍ବେ ଗୃହଦାହରେ ଦଗ୍ଧୀଭୂତ ହୋଇ ଯାଇଅଛି । ସମ୍ପ୍ରତି ସ୍ମୃତି ସାହାଯ୍ୟରେ ସଙ୍ଗୀତ ଗୁଡ଼ିକ ସଂଗୃହୀତ ହୋଇ ଶୈଶବ-ଗୀତିକା ନାମରେ ପ୍ରକାଶିତ ହୋଇଅଛି ।

ଉପସଂହାର ସ୍ଥଳରେ ବିନୀତ ପ୍ରାର୍ଥନା ଏହି କି, ଏହି ପୁସ୍ତକର ଅଧ୍ୟାପକଗଣ ଶିଶୁମାନଙ୍କୁ ସଙ୍ଗୀତ ଶିଖାଇବା ପୂର୍ବେ ତଦନୁଯାୟୀ କିରୂପେ ଅଙ୍ଗଚାଳନା କରିବାକୁ ହେବ, ତାହା ଧୀରଚିତ୍ତରେ ସ୍ଥିର କରି ଶିଖାଇବେ; ତାହା ହେଲେ ହିଁ ମୋର ପରିଶ୍ରମର ସାର୍ଥକତା ସମ୍ପୂର୍ଣ୍ଣରୂପେ ଉପଲବ୍ଧି କରି ସୁଖୀ ହେବି । ଇ:

| | |
|---|---|
| ତା ୭।୮।୧୯୧୨ | ପ୍ରଣେତା |
| ପାଲବା ଗୁ. ଟ୍ରେ. ସ୍କୁଲ | ମୁନସୀ ଜାନ ଶାହ । |

## ୨ୟ ସଂସ୍କରଣର ବିଜ୍ଞାପନ ।

---

ମତ୍ପ୍ରଣୀତ ଶୈଶବଗୀତିକାର ଉପଯୋଗିତା ସମ୍ବନ୍ଧରେ କଟକ ଟ୍ରେନିଂ ସ୍କୁଲର ହେଃ ମାଷ୍ଟର ପୂଜନୀୟ ଶ୍ରୀଯୁକ୍ତ ବାବୁ ଚନ୍ଦ୍ରମୋହନ ମହାରଣା ବି.ଏ., ଶିକ୍ଷାବିଭାଗୀୟ ଡେପୁଟି ଇନ୍‌ସ୍ପେକ୍ଟର ଶ୍ରୀଯୁକ୍ତ ବାବୁ ଯୋଗେଶଚନ୍ଦ୍ର ଘୋଷ ବି.ଏ., ମୌଲଭୀ ଶ୍ରୀଯୁକ୍ତ ସୟଦ ଜିଆଉଲ ହକ୍ ବି.ଏ. ପ୍ରମୁଖ ବିଜ୍ଞ ମହୋଦୟଗଣ ଅନୁକୂଳ ମତ ପ୍ରକାଶ କରିବାରୁ ଏବଂ ବିଶେଷତଃ ତାହାର ପ୍ରଥମ ସଂସ୍କରଣର ପୁସ୍ତିକା ଗୁଡିକ ଉତ୍କଳଭାଷୀ ସୁକୁମାର ମତି ଅଳ୍ପବୟସ୍କ ବାଳକ ବାଳିକାମାନଙ୍କର ଆଗ୍ରହ ଲାଭ କରି ନିଃଶେଷ ପାଇବାରୁ ସମ୍ପ୍ରତି ତାହାର ଦ୍ୱିତୀୟ ସଂସ୍କରଣ ପ୍ରକାଶ କଲି । ଇଂ ତା ୨୧।୨।୧୯୧୫

ପ୍ରଣେତା ।

# ସୂଚିପତ୍ର ।

# ଶୈଶବ-ଗୀତିକା ।

## ୧ ଜହ୍ନମାମୁ ।

ଆରେ ଜହ୍ନମାମୁ ଅଛୁ ତୁ କାହିଁ ?
ଦିନବେଳେ କିଆଁ ଦିଶୁନୁ ନାହିଁ ?
ବହୁତ ଦୂରରେ ମୋ ମାମୁଘର,
ମାମୁ କରେ ମୋତେ ବଡ଼ ଆଦର ।
ପାଚଲା କଦଳୀ ପାଚଲା ଆତ,
ଛେନା, ଦୁଧ, ପିଠା ତବତ ଭାତ,
ଖାଇବାକୁ ମାଇଁ ଦିଅନ୍ତି ମୋତେ,
ମାଆ ପରି ସ୍ନେହ କରନ୍ତି କେତେ ।
ଆଇମା ଶରଧା ବେଶି କରନ୍ତି,
ରାଜା ରାଣୀ ଗପ କେତେ କହନ୍ତି ।
ମାମୁ-ପୁଅ ଭାଇ ମୋ ସଙ୍ଗେ ଖେଳେ,
ରହିବାକୁ କହେ ମୋହର ମେଳେ ।
ମାମୁ ଘରଠାକୁ ଯେ ଦିନ ଯିବି,
ମୋ ମାମୁ ମାଇଁଙ୍କି ଜୁହାର ହେବି ।
ଆରେ ଜହ୍ନମାମୁ ଜୁହାର ତୋତେ,
ତୋ ରୂପଟି ଭଲ ଦିଶଇ ମୋତେ,
ଠିଆ ହୋଇ ମୁହିଁ ସବୁଜ ଘାସେ,
ଦେଖୁଥିବି ତୋତେ ନୀଳଆକାଶେ ।

### ୨ ସାଆନ୍ତ ମା ।

ସାଆନ୍ତ ମାଆ ମୋହର   ମୋତେ ଭଲ ପାଏ;
ଭଲ ପଦାର୍ଥ ସେ ମୋତେ   ନ ଖାଇ ଖୁଆଏ ।
କେତେଥର ଝାଡୁଥାଏ   ମୋ ଦେହରୁ ଧୂଳି;
କେତେଥର ପୋଛୁଥାଏ   ମୋ ଦେହରୁ ମଳି ।
ମୋତେ ସଙ୍ଗେ ନ ଖୁଆଇ   ଭାତ ଖାଏ ନାହିଁ;
ପଡ଼ିଗଲେ ଖେଳୁ ଖେଳୁ   ଉଠାଏ ସେ ଧାଇଁ ।
ମୋ ସାଆନ୍ତ ମାଆଙ୍କର   ବଡ଼ ଦୟା ଭାଇ;
ଯାହା ଯେ ମାଗେ ସେ ଦିଏ   ମନା କରେ ନାହିଁ ।
ଗରିବକୁ ଦେବା ଭାଇ   ଆମ୍ଭେ ଦୟା କରି;
ନ ଦେଲେ ଗରିବ ଦୁଃଖେ   ଯିବ ସିନା ଫେରି ।

---

### ୩ ସାଆନ୍ତ ବାପା ।

ବସିଛନ୍ତି ମୋର   ସାଆନ୍ତ ବାପା,
ତାଙ୍କ ଗୋଡ଼ ଘସି   ଦେଉଛି ଅପା ।
ସାଆନ୍ତେ ମୋହର   ଗାଧୋଇ ଯିବେ,
ଘଷି ଘାଷି ମୋତେ   ଗାଧୋଇ ଦେବେ ।
ସାଆନ୍ତେ ଖାଇବେ   ଭରତ ଭାତ,
ଖାଇବି ତା ସଙ୍ଗେ   ଧୋଇ ମୁଁ ହାତ ।
ଭାତଥାଳି ଦେବ   ମୋ ଅପା ଆଣି,
ମୁଁ ଦେବି ତାହାଙ୍କୁ   ପିଇବା ପାଣି ।
ଭାତ ଖାଇ ହାତ   ଧୋଇବି ତୁଣ୍ଡେ;
ବୁଲୁଥିବି ଗୀତ   ଗାଇଣ ଦାଣ୍ଡେ ।

ଦଣ୍ଡବତ ମୋର    ଯାଆନ୍ତୁ ତୋତେ,
ଛାଡ଼ିଖିଆ ବେଳେ    ଡାକିବୁ ମୋତେ ।

---

୪ ପିତା ମାତା ।

ମୋର ପିତା ମାତା ତ    କେତେ କଷ୍ଟ ସହି,
ପାଳୁଛନ୍ତି ମୋତେ ରେ    କହିତ ନୁହଇ ।
ମୋତେ ଜ୍ୱର ହେଲେ ତ    ତାଙ୍କର ଭାବନା,
ଉଜାଗରେ ଜଗନ୍ତି    ବୁଝିଯାକ ସିନା ।
ମୋତେ ବଡ଼ ଜାଣନ୍ତି    ଟଙ୍କା ସୁନା ଠାରୁ,
ମୋତେ ଖୋଜି ଘରକୁ    ଆଣନ୍ତି ବାହାରୁ ।
ମୋ ପଢ଼ିବା ପାଇଁ ତ    ପଇସା କଉଡ଼ି,
ତାହାଙ୍କର କେତେ ରେ    ଯାଉଅଛି ଉଡ଼ି ।
ମାଆ ମୋର ବସିଥାଏ    ମୋ ବାଟକୁ ଚାହିଁ,
ମୋ ପାଇଁ ସେ ରଖିଥାଏ    ପେଟକୁ ନ ଖାଇ ।
କଣ ବା ମୁଁ କରିବି    ତାଙ୍କ ଉପକାର ?
କେମନ୍ତେ ବା ସୁଝିବି    ଏ ଋଣ ତାଙ୍କର ?
ମନ ଦେଇ ପଢ଼ିବି    ବିଦ୍ୟା ହେବ ମୋର,
ରୋଜଗାର କରିବି    ନାନା ଉପାୟରେ ।
ତାଙ୍କ କଥା ମାନିବି    ଯାହା ସେ କହିବେ,
ତାଙ୍କୁ ଆଣି ଦେବି ମୁଁ    ଯାହା ସେ ମାଗିବେ
ତାଙ୍କୁ ସୁଖେ ରଖିବି    ଠାକୁରଙ୍କ ପରି,
ସେତ ମୋର ପ୍ରଭୁ ରେ    କିଏ ତାଙ୍କ ସରି ।
ତାଙ୍କ ସେବା କରିବି    ନିତି ଦିନ ରାତି,
ପିତା ମାତା ପରି ରେ    କେହି ତ ନାହାନ୍ତି ।

## ୫ ଅନ୍ଧ ।

ଏହି ଯେ ଆସୁଛି ବୁଢ଼ା ଅଣ୍ଡାଳି ଅଣ୍ଡାଳି,
ବେଗେ ଚାଲି ପାରୁ ନାହିଁ କାନ୍ଦେ ଭାଳି ଭାଳି ।
କିଏ ଯାଏ କିଏ ଆସେ ଜାଣି ପାରେ ନାହିଁ,
ଏ ସୁନ୍ଦର ସଂସାର ସେ ଦେଖି ପାରେ ନାହିଁ ।
ବଳ ତାର ନାହିଁ ରେ କାମ ସେ କରିବ,
ଦିଶୁ ନାହିଁ ତାକୁ ସେ କେମନ୍ତେ ପଢ଼ିବ ?
ଚାଲୁଁ ଚାଲୁଁ ଝୁଣ୍ଟୁଛି ପଡ଼ୁଅଛି ନଇଁ,
ଧୀରେ ଧୀରେ ଚାଲୁଛି କେତେ କଷ୍ଟ ସହି ।
ଅନ୍ଧ ମନ ଜାଣି ଯେ କିଛି ତାକୁ ଦେବ,
ତାହାକୁ ସେ ଆନନ୍ଦେ କଲ୍ୟାଣ କରିବ ।

---

## ୬ ଭିକାରି ।

ଦେଖ ବୁଢ଼ା ଭିକାରି ଦୁଆରେ ଦୁଆରେ,
କେତେ କଷ୍ଟ ବୁଲୁଛି ଖରା ବରଷାରେ ।
ଭିକ ପାଇଁ ବିକଳରେ କେତେ ସେ ଡାକୁଛି,
ନଇଁ ନଇଁ ଘରକୁ କେତେ ସେ ଝୁଙ୍କୁଛି ।
ମୁଠେ ମୁଠେ ଚାଉଳ ନିଏ ଜାଚି ପାଚି,
ପୁଅ ଝିଅ ତାହାର କେହି କି ନାହାନ୍ତି ?
ବଳ ତାର ଥିଲେ କି ଭିକ ସେ ମାଗନ୍ତା,
ଏତେ ହୀନ ବେଶଭୂଷା ଖୁସିରେ ବଞ୍ଚନ୍ତା ?
ବଳ ଥାଉ ଯେ ଲୋକ ମାଗି ବୁଲେ ଭିକ,
ବୁଦ୍ଧି, ବଳ, ଜୀବନ ସବୁ ତାର ଧିକ ।

## ୭ ମହାଜନ ।

ବଡ଼ ବଜାରରେ ଦେଖ ବସି ମହାଜନ,
ଧନ ରାଶି ଗଣୁଅଛି ଟଙ୍କା ପଣ ପଣ ।

ମେଲ ଦେଇଛି ଗୋଦାମ ଦେଖ କି ସୁନ୍ଦର,
ସଜାଇଛି ନାନା ଦ୍ରବ୍ୟ କେଡ଼େ ଯତନର ।

ଖଟିଛନ୍ତି ଚାକର ରେ ଏଣେ ତେଣେ ଧାଇଁ,
ବେପାରିମାନଙ୍କୁ ସେଠା ମାଲ ଦେବା ପାଇଁ ।

ଲାଗିଅଛି ବିକା କିଣା ଝୁଲୁଅଛି କଣ୍ଟା,
ଓଜନ ହେଉଛି ମାଲ ଦେଖ ଘଣ୍ଟା ଘଣ୍ଟା ।

ବସିଅଛି ବାବୁ ପରି କରି କାରବାର,
ଲେଖୁଅଛି ଖାତାପତ୍ର ବଡ଼ ହୁସିଆର ।

ଚାକର ଯେ କରୁଛି ସେ ଖଟି ମାସ ଯାକ,
କେବଳ ପାଇବ ସିନା ଦରମା ଗଣ୍ଡାକ ।

ମହାଜନ ପରି ଲାଭ ସେ କାହୁଁ କରିବ,
ମନସୁଖେ କାମ କରି ଧନ କଠାଇବ ।

ମହାଜନୀ ବ୍ୟବସାୟେ ହିସାବ ଅସଲ,
ସବୁ ବ୍ୟବସାୟ ଠାରୁ ଏ ବେଉସା ଭଲ

ବଡ଼ ମୁଁ ହୋଇଲେ ଯେବେ ପଇସା ଥାଇବ,
ମହାଜନୀ ବ୍ୟବସାୟେ ନିଶ୍ଚୟ କରିବ ।

ବସିଥାଅ ମହାଜନ କର କାରବାର,
ଯାଉଛି ଘରକୁ ଖାଇ ଜୁହାର ଜୁହାର ।

୮ କୃଷକ ।

ଏହିତ କୃଷକ ରୂପ— କାଶ୍ତ ଜଗତର,
କୃଷି କରି ଯୋଗାଉଛି ସକଳ ଆମ୍ଭର ।
କ୍ଷେତରେବୁଣିଛି ଧାନ ପାଳେ ଅଶ୍ଵବୃଷ,
ବାଡରେ କଦଳୀ ଶ୍ରେଣୀ ଫଳେ ବାରମାସ ।
ପାଳିଅଛି ଗୋରୁ ଗାଈ ପାଏ ଦୁଧ ଦହି,
ଭାଇ, ବନ୍ଧୁ ସଙ୍ଗେ ଘରେ ସୁଖେ ଅଛି ରହି ।
ଦିନଯାକ କାମ କରେ ଦେଖେ ବିଲ ବାଡି,
ବିଦେଶ ସେ ଯାଏ ନାହିଁ କେବେ ଘର ଛାଡି ।
ଅମାରରେ ଧାନ ତାର ବାଡରେ ପଇବା,
ଘରେ ଦୁଧ ଘିଅ ତାର ଊଣା ଅଛି କିବା ।
ନିଜେ ଖାଇ ପିଇ ପୁଣି କୁଟୁମ୍ବ ପାଳୁଛି,
ପର ଦୁଃଖ ଦେଖି ପୁଣି ତାକୁ ଦେଉଅଛି ।
କୃଷକ କୁଟୁମ୍ବ ସଙ୍ଗେ ସୁଖେ ଘରେ ଥାଏ,
ଯେତେବେଳେ ଯାହା ପାଏ ଆନନ୍ଦରେ ଖାଏ ।

---

୯ ବାଳକ ।

ମୁହିଁତ ବାଳକ ମୋର କାମ ପାଠ ପଢ଼ା,
ଏଣେ ତେଣେ ଯିବ ନାହିଁ ଖେଳବେଳ ଛଡ଼ା ।
ପିତା, ମାତା, ବଡ଼ଭାଇ ମୋର ଗୁରୁଜନ,
ତାଙ୍କ କଥା କଲେ ଖୁସି ହେବ ତାଙ୍କ ମନ ।
ସେମାନେ କରନ୍ତି ସବୁ ମୋର ଭଲ ପାଇଁ,
ତାଙ୍କ ଆଜ୍ଞା ପାଳିବି ମୁଁ ଆନନ୍ଦରେ ଧାଇଁ ।

ଖେଳନ୍ତୁ ପଢ଼ନ୍ତୁ ମୋର     ସଙ୍ଗେ ଯେତେ ଜଣ,
ସେମାନେ ମୋହର ଭାଇ     ଭଉଣୀ ସମାନ ।
କାହାରିକୁ ନ କହିବ     କେବେ କଟୁକଥା,
କାହାର ମନରେ କେବେ     ଦେବ ନାହିଁ ବ୍ୟଥା ।
ଲେଖିବ ପଢ଼ିବ କାମ     କରିବ ଯତନେ,
ମୋଠାରେ ଶରଧା ହେବ     ସମସ୍ତଙ୍କ ମନେ ।

---

## ୧୦ ଈଶ୍ୱର ।

ଗୃହଅଙ୍ଗେ ଦେଖୁଅଛ     ଯେଉଁ ଗଛମାନ,
ନାନାଜାତି ଫଳ ମୂଳ     ଘାସ ଧାନ ପାନ,
ଗୋରୁ ଛେଳି ଘୋଡ଼ା     ହାତୀ କୁଆ ଶୁଆ ଶାରୀ,
ପିତା ମାତା ଭାଇ ବନ୍ଧୁ     ପଡ଼ଶୀ ଆମ୍ଭର,
ନଦୀ ପରବତ ଜଳ     ସ୍ଥଳ ଏ ଆକାଶ,
ଚନ୍ଦ୍ର ସୂର୍ଯ୍ୟ ତାରା ଯାହା-     ଙ୍କର ତହିଁ ବାସ,
ଏ ସୁନ୍ଦର ଜଗତ     ଏ ଜୀବ ଅଗଣନ,
ଖରା, ବର୍ଷା, ଦିନ, ରାତି     ଶୀତଳ ପବନ,
ଏ ସକଳ ଯେ କରିଛି     ସେହିତ ଈଶ୍ୱର,
ସେହିତ ଜଗତପତି     ଜଗତଠାକୁର,
ଯାହା ମୁଁ କରୁଛି     ଯାହା ଭାବୁଅଛି ମନେ,
ସେ ପ୍ରଭୁ ପାରନ୍ତି ଜାଣି     ସବୁ ଅନୁକ୍ଷଣେ ।
ମନେ ମନେ ହେଳ     ତାଙ୍କୁ ଦଣ୍ଡବତ କର,
ତାଙ୍କଠାରୁ ବଡ଼ ଆଉ     ନାହିଁ ଜଗତର ।

## ୧୧ ଗୋରୁ ।

ଗାଈଦୁଧ ପିଇ        ହୁଅଇ ବଳ,
ବିଲରେ ବଳଦ        ଟାଣେ ଲଙ୍ଗଳ ।
ହଳ କରେ ପୁଣି        ଶଗଡ଼ ଟାଣେ,
ଛେଳି ବନ୍ଧୁ ପୁଣି        ଘରକୁ ଆଣେ ।
ଶ୍ରାବଣ ମାସର        ଘୋର ବରଷା,
ବଇଶାଖ ଖରା        ଉଡ଼ାଏ ହଁସା;
ତାକୁ ସହି ଭାଇ        କରେ ସେ କାମ,
ଉପକାରୀ ପଶୁ        ଗୋରୁର ନାମ ।
ଖାଇବାକୁ ଦିଅ        ଗୋରୁକୁ ଭାଇ !
କାମ ସେ କରୁଛି        ଆମ୍ଭର ପାଇଁ ।
ପଡ଼ିଆର ଘାସ        ବିଲର ଛଣି
ଖାଇ କି ପାରିବ        ଲଙ୍ଗଳ ଟାଣି ?
ପିଣ୍ଡଅକୁ ଡୁଛି        କୋମଳ ଘାସ
ଖାଇଲେ ତାହାର        ପୂରିବ ଆଶା ।

---

## ୧୨ ବିରାଡ଼ି ।

ଶାଙ୍ଗି ବିରାଡ଼ି, ଖଙ୍ଗି ବିରାଡ଼ି !
ବୁଲୁଥାଉ କାହିଁ ଛୁଆକୁ ଛାଡ଼ି !
ଆମ୍ଭ ଘର ମୂଷା ମାରିବୁ ଯେବେ,
ଦୁଧ, ଭାତ, ପିଠା, ଖାଇବୁ ତେବେ ।
ମୁନିଆଁ ଜଣକୁ ଲୁଚାଇ ରଖୁ,
ଅନ୍ଧାରୁଆ ଘରେ ମୂଷାକୁ ଛକୁ ।

ଶୀତଦିନେ ଶୋଉ ଚୁଲ୍ଲି ମୁଣ୍ଡରେ,
ଖରା ପୋଉଁ ବସି ମଝିଦାଣ୍ଡରେ ।

ଦୁଧ, ଘିଅ, ମାଛ ତୋର ଆହାର,
ଖୋଜି ବୁଲୁଥାଉ ଅଛୁ କାହାର ?

ଭୋକବେଳେ ଯେବେ ଘରକୁ ଯାଉ,
ଲାଙ୍ଗୁଡ଼ି ହଲାଇ ବୋବାଉ ଥାଉ ।

କୋମଳ ଅଟଇ ଦେହ ତୋହର,
ଧାନକୋଠୀ ଶଙ୍କି ତୋହର ଡର ।

ମୋ ପାଖରେ ଥିବୁ ଯିବୁ ମୋ ସଙ୍ଗେ,
ତୋ ଛୁଆ ସଙ୍ଗେ ମୁଁ ଖେଳବ ରଙ୍ଗେ ।

---

## ୧୬ ବାନର ।

ଦେହଟି ସୁନ୍ଦର    ମୁହଁଟି ବାନର
ବାନରର ମୁହଁ କଳା,
ବାନର ବସିଛି    ଗଛର ଅଗରେ
ଅଭ୍ୟାସ ଗୁଣରୁ ପରା ।

ଡାଳରୁ ଡାଳକୁ    ଡେଇଁ ସେ ପଡୁଛି
ମାଙ୍କୁଡ଼ନାହିଁ ତାକୁ ଡର,
ତା ହାତ ଗୋଡ଼ଟି    ଭଲ ଶିଖିଛି ରେ
ଡାଳ ଧରିବାକୁ ଖର ।

ଖରା ବରଷା ସେ    ଗଛରେ କଟାଏ
ରାତିରେ ଶୁଏ ସେ ଡାଳେ
କେଡ଼େ ସାବଧାନେ    ଡାଳେ ଶୋଇଥାଏ
ତଳ ତ ନ ପଡ଼େ କାଳେ ।
ଯେତେବେଳେ ତାର    ଛୁଆଙ୍କୁ ଝୁଲାଇ
ତା କାମ ସେ କରୁଥାଏ,
ବାଡ଼ି ବାଇଗଣ    ପତର ଫଳକୁ
ଖାଏ ଯହିଁ ଯାହା ପାଏ ।

---

୧୪ ହାତୀ ।

ଇଲ ମିଲ ଖିଲକାଡି    ରାଜାଘର ପାଟହାତୀ,
ଆଖି ଛୋଟ ବଡ଼ କାନ    ହାତୀ ବଡ଼ ବଳବାନ ।
ହାତୀ ଖାଏ ବରଡାଳ    ଡେଇଁ ପାରେ ନାହିଁ ନାଳ,
ହାତୀ ବନସ୍ତରେ ଥାଏ    ଯେଣେ ଇଚ୍ଛା ତେଣେ ଯାଏ ।
ଏବେ ତାର ନାହିଁ କାରୁ    ପିଠିରେ ବସିବେ ବାବୁ,
ପଶୁ ମଧ୍ୟେ ବଡ଼ ହାତୀ    ତା ଠାରୁ ବଡ଼ ନାହାନ୍ତି

---

୧୫ କାଉ ।

କାଉ ରାବ ରାଉ ରାଉ    ପ୍ରଭାତୁଁ ମୋତେ ଜଗାଉ
ମୋ ଉଠିବା ଆଗୁଁ କାଉ    କେତେ ଆଡ଼େ ବୁଲିଯାଉ ।
ବଗିଚାର ପୋକ ଯୋକ    ଖାଇଁ ତୁ ମେଣ୍ଟାଉ ଭୋକ ।
ପୋକ ଯୋକ କାଠ ମାର    ହୁଅ ସାଧୁ ତୁ ଆମ୍ଭର ।
ହେଁସ ଧାନ ଯେତେ ଖାଉ    ତେତେ ତୁ ପୋଷାକୁ ଥାଉ ।
ମନ୍ଦ ଛାଡ଼ ଏହି ଭାବ    ପଳା ତୁ ଆଉ ନ ରାବ ।

## ୧୬ ବାଉ ।

ଢେଙ୍ଗା ତାଳଗଛ ପତର ଅଗରେ
ଝୁଲୁଅଛି ବାଉ ବସା,
ବାଉ ଗଢ଼ାଇଛି ଛୋଟ ସିନା ଭାଇ
ତା ବୁଦ୍ଧି ବଡ଼ ସରସା ।
ହାତ ନାହିଁ ତାର ଗୋଟିଏ ଥଣ୍ଟ ରେ
ଯୋଡ଼ିଏ ଗୋଡ଼ ମାତର,
କପଡ଼ ନେଇ ସେ କାଠି କୁଟା ଘାସ
ସିଇଁଛି କେଡ଼େ ସୁନ୍ଦର ।
ତା ଭିତରେ ପୁଣି କୋଠରି ତୋଳିଛି
ଡିମ୍ବ ଛୁଆ ରଖିବାକୁ,
କେଡ଼େ ଛୋଟ ପୁଣି କେଡ଼େ ବୁଦ୍ଧିମାନ
ଗଢ଼ିଛି ପ୍ରଭୁ ତାହାକୁ ।
ବସି ସିଉଁଥାଏ ଦରଜ ବୁଢ଼ା ରେ
ଝୁଲିଁ ସିଉଁଥାଏ ବାଉ,
ଝଡ଼ଝଞ୍ଜା ବତାସକୁ ଡର ସିନା ତାର
କାହାକୁ ଡରେ ସେ ଆଉ ?

---

## ୧୭ କୋକିଳ ।

( ଅନୁଗୀତ ହେବ )

ମଦୁ ଏ କାହାର ସ୍ୱର ?
କୋକିଳର ସ୍ୱର ଏହା ସୁମନୋହର
ଅଛି କାହିଁ କୋକିଳ ?
ଅମ୍ବଡାଳେ ଅଛି ଯହିଁ ପତ୍ର ଗହଳ ।

ଏତ ନ ଥିଲା ଆଗେ ?
ବସନ୍ତ ଋତୁରେ ଆଟେ ତାହାରି ଢଙ୍ଗେ ।
ରୂପ ନୁହେଁତ ଭଲ ?
ରୂପେ କଣ ଅଛି ଜାଣ ଗୁଣ ଅସଲ ।
ପକ୍ଷୀ ଯିବୁ ମୋ ସଙ୍ଗେ ?
ତୋ ସଙ୍ଗ କି ଦରକାର ଉଡିବ ରଙ୍ଗେ ।
ଉଡି ଯାଉ କି ଫଳ ?
ମନସୁଖେ ଦେଖେଁ ନାନା ଦେଶ ସକଳ ।
ପକ୍ଷୀ ଗାଉ କପାଇଁ ?
ଗୀତ ଛଳେ ଗୁଣ ଗାଏଁ ଜଗତପାଇଁ ।

---

୧୮ ହଂସ ।

ଗୋଡ଼ ଅଣ୍ଟ ହଳଦିଆ ଧଳା ତୋର ପର,
ଗୋଡ଼ ଛୋଟ ବେକ ଲମ୍ବ ରୂପ ମନୋହର ।
ଟୁଲ୍ ଟୁଲ୍ ହଲି ଯେତ ଭଲ ଦିଶେ ନାହିଁ,
ତୋ ଅଙ୍ଗୁଳି ଯୋଡ଼ା ସେତ ପହଁରିବା ପାଇଁ ।
ଖାଉ ଗେଣ୍ଡା ଶାମୁକା ରେ ରହୁ ଜଳ ସ୍ଥଳେ,
ଟୁଲ୍ ପହଁରୁ ଦଉଡୁ ଡେଣା ବିସ୍ତ ବଳେ ।
ଚକମକ ପରି ତୋ ଅଣ୍ଡା ଦିଶେ କି ସୁନ୍ଦର,
ଲେଖିବାକୁ ଭଲ ଲାଗେ ମୋତେ ତୋର ପର ।

### ୧୯ ଗୁଣ୍ଡୁଚି ମୂଷା ।

ଗୁଣ୍ଡୁଚି ମୂଷା ରେ    ଗୁଣ୍ଡୁଚି ମୂଷା ।
ଗଛର କୋଟରେ    ତୋଳିଛୁ ବସା ।
ବଡ଼ ମନ ତୋର    ଖେଳିବା ପାଇଁ,
ଏ ଡାଳେ ସେ ଡାଳେ    ବୁଲୁଛୁ ଧାଇଁ ।
ଖେଳୁ ଖେଳୁ ସରି-    ଯାଉଛି ବେଳ,
ସବୁବେଳେ ତୋତେ    ଲାଗିଛି ଖେଳ ।
କଅଣ ଖାଇବୁ    କେବେଁ ନ ଭାବୁ,
ଖେଳିଲେ କି ପେଟ    ପୂରିବ ବାବୁ ।
ହସି କହେ ମୂଷା    ଶୁଣ ରେ ଭାଇ !
ବହୁତ ରଖିଛି    ଖାଇବା ପାଇଁ ।
କାମ ବେଳେ କାମ    କରେ ମୁଁ କଷି,
କଟାଏଁ ଏ ବେଳ    ମୁଁ ଖେଳ ବସି ।
ଯେ ବେଳେ ଯେ କାମ    ତାହା ଯେ କରେ,
ଦିନ କଟାଏ ସେ    ଅତି ସୁଖରେ ।

---

### ୨୦ ହଳଦୀବସନ୍ତ ।

ହଳଦୀବସନ୍ତ    ବସନ୍ତକାଳେ,
ଉଡି ବୁଲୁଥାଏ    ଗଛର ଡାଳେ ।
ହଳଦୀଆ ଦିଶେ    ପର ତାହାର,
ଛଣି, ସୋରିଷର    ଫୁଲ ପ୍ରକାର ।
ଶୀତ ବରଷାରେ    ଥାଉ ତୁ କାହିଁ ?
ବସନ୍ତ ଋତୁରେ    ଆସୁ ତୁ ଧାଇଁ ।
ବସନ୍ତର ଶେଷେ    ତୁ ଉଡି ଯାଉ,
ସବୁଦିନେ ତାହା    ସଙ୍ଗରେ ଥାଉ ।

## ୨୧ ସୂର୍ଯ୍ୟ ।

( ଗୀତ ସହ ଅଙ୍ଗଚାଳନା )

ଏ ଆକାଶ ମୋର ବାସ
ମୋତେ ଦେଖ ଦିନବେଳେ,
ମୋ ଆଲୋକ ମୋ କିରଣ
ପଡ଼ଇ ସକଳ ସ୍ଥଳେ ।
ମୋ ଆଲୋକ ତେଜ ପାଇ
ବଞ୍ଚିଅଛି ଏ ଜଗତ,
ମୁହିଁ ସୃଷ୍ଟି କରେଁ ମେଘ
ଭଲ ଏ ମିଛ କି ସତ ।
ମୋ ଯୋଗୁଁ ପବନ ବହେ
ଗଛ ଦିଏ ଫଳମାନ,
ମୋ ଯୋଗୁଁ ବଞ୍ଚିଛନ୍ତି ସର୍ବେ
ଏ କଥା ନୁହଇ ଆନ ।

---

## ୨୨ ସୂର୍ଯ୍ୟୋଦୟ ।

ଶୀତଳ ପବନ ବହୁଛି ଧୀରେ
ପକ୍ଷୀଏ ରାବନ୍ତି ମଧୁର ସ୍ୱରେ ।
ରକ୍ତବର୍ଣ୍ଣ ବଡ଼ ପେଣ୍ଡୁ ସମାନ
ଦିଶୁଁ ଦିଶୁଁ ସୂର୍ଯ୍ୟ ହେଉଛି ସାନ ।
ଦ୍ୱିପ୍ରହରେ ଦିଶେ ଅତ୍ୟନ୍ତ ସାନ,
ମାତ୍ର ଖରା ବଡ଼ ହୁଅଇ ଟାଣ ।

ପଶ୍ଚିମ ଅଙ୍ଗକୁ ଘୁଞ୍ଚୁଛି ଯେତେ,
ବଢୁଅଛି, ଶଶୀ ନଇଁଛି ତେତେ
ସମାନ ଉଦୟ ଅସ୍ତ ଘଟନା,
ଜଗତରେ କେବଳ ବିଭେଦ ବିନା ।

---

## ୨୩ ମେଘ ।

କଳା ମେଘ ଠୋପା ଠୋପା ଜଳ ବରଷୁଛି
ପବନ କେମନ୍ତ ଭାଇ ଶୀତଳ ଲାଗୁଛି ।
ଶବଦ ଶୁଭୁଛି ଶୁଣ ଟପର ଟପର,
ଚାଳରୁ ବହୁଛି ଧାର ହୋଇ ଝର ଝର ।
ଭୂଇଁ ଭେଦ ଯାଉଅଛି ପାଣି ସବୁ ଗଡ,
ନାଳରେ ବହୁଛି ସ୍ରୋତ ଦେଖ ହେ କପଡ଼ ।
କୁଟା, କାଠି, ପତ୍ର କେତେ ନେଉଛି ଭସାଇ,
ନେଉଅଛି ଧୂଳି ମାଟି ଦାଣ୍ଡ ଧୋଇ ଧାଇ ।

---

## ୨୪ ବିଦ୍ୟୁତ୍ ।

ରକ୍ତବର୍ଣ୍ଣ ଲତା ଦେଖ ଖେଳେ ନୀଳାକାଶେ
ତାର ଶୋଭା ଦେଖାଏ ସେ କ୍ଷଣିକ ସକାଶେ ।
ଲମ୍ବ, ଲମ୍ବ ବଙ୍କା, ବଙ୍କା ହୋଇ କି ସୁନ୍ଦର,
କଳାମେଘ ଉପରେ ସେ ଚଳୁଥାଏ ଖର ।
କାହୁଁ ଆସେ କାହୁଁ ଯାଏ ଜଣା ପଡ଼େ ନାହିଁ,
କ୍ଷଣିକ ପ୍ରବଳ ହେଲେ ଦିଏ ଚମକାଇ ।

## ୧୫ ଇନ୍ଦ୍ରଧନୁ ।

ଖରା କରଅଛି  ମେଘ ବରଷୁଛି,
ଦେଖ ଦେଖ ଇନ୍ଦ୍ରଧନୁ,
କେମନ୍ତ ସୁନ୍ଦର  କିଏ କାରିଗର
କହ, ନ ଯିବଟି ମନୁଁ ।
ନୀଳଆକାଶରେ  କଳାମେଘ ଦରେ
ପୂର୍ବ ବା ପଶ୍ଚିମଭାଗେ,
କ୍ଷଣକାଳ ପାଇଁ  ତୋତେ ମୁଁ ଦେଖଇଁ
ଥାଉ ତୁ ସୂର୍ଯ୍ୟର ଆଗେ ।
ରକ୍ତ, ନୀଳ, ପୀତ  ନାରଙ୍ଗି, ହରିତ
ବାଇଗଣି ବର୍ଣ୍ଣମାନ,
ତୋର ଶୋଭା ସିନା  ବଢ଼ାଉ ଅଛନ୍ତି
ଆଉ କେ ତୋର ସମାନ ?

---

## ୧୬ ଦିଗ ।

ସୂର୍ଯ୍ୟ ଯେଉଁ ଆଡ଼େ ଭାଇ  ଦେଖ ପ୍ରଭାତରେ,
ପୂରୁବ ସେ ଦିଗ ନାମ  ରଖ ହେ ମନରେ ।
ପୂରୁବକୁ ମୁଖ କରି  ହାତ ସିଧା କର,
ଡାହାଣେ ଦକ୍ଷିଣ ହେବ  ବାମକୁ ଉତ୍ତର,
ପଛ ଆଡ଼େ ଯେଉଁ ଦିଗ  ତା ନାମ ପଶ୍ଚିମ,
ଚାରି ଦିଗ ନାମ ମନେ—  ରଖ ଅହେ ଶ୍ୟାମ ।
ସୂର୍ଯ୍ୟ ପୂର୍ବେ ଥିଲେ ଛାଇ  ପଡ଼େ ପଶ୍ଚିମରେ,
ପଡୁଛି ପୂର୍ବକୁ ଛାଇ  ସୂର୍ଯ୍ୟ କେଉଁ ଆଡ଼େ ?
ଛାଇ ଦେଖି ଦିଗ ନାମ  ପାରିବ କି କହି ?
ଅନ୍ଧାରରେ କାହିଁ ଭାଇ  ଛାଇ ନ ପଡ଼ଇ ?

## ୨୭ ପ୍ରାତଃକର୍ମ ।

### ( ଗୀତ ସହ ଅଙ୍ଗଚାଳନା )

ସକାଳେ ମୁଁ ଉଠିବି, ନଜେ ଦାନ୍ତ ଘଷିବି ।
ପିଠା, ଜଳଖିଆ ଖାଇ ବାହାରେ ବୁଲିବି ଯାଇ ।
ଦେହେଁ ଲାଗି ଶୀତବାୟୁ ବଢ଼ାଇବ ପରମାୟୁ ।
କା, କା, ରବ କାକ, ବୁଲୁଅଛି ସାହି ଯାକ ।
ଦେଖ ପୂରୁବ ଗଗନ, କେଡ଼େ ଲୋହିତ ବରଣ ।
ଉଇଁଲାଣି ସୂର୍ଯ୍ୟ ଭାଇ, ବୁଲିବାକୁ ବେଳ ନାହିଁ ।
ଫେର ନ କର ମଠ ଯାଇ ପଢ଼ିବା ପାଠ ।

---

## ୨୮ ରେଖା ।

### ( ଗୀତ ସହ ଅଙ୍ଗଚାଳନା )

ସରଳ ମୋ ଦୁଇ ବାହୁ ସରଳ ଅଙ୍ଗୁଳି,
ତାଠାରୁ ସରଳ ବେଶି ମୋର ପେନସିଲ ।
ଅଣ୍ଟାରେ ଥୋଇଛି ହାତ କୁଟିଳ ହୋଇଛି,
ଏ ମୋର ପତାକା ଦେଖ ଧୀରେ ଦୋହଲୁଛି ।
ସରଳ ଏହାର ଦଣ୍ଡ କୁଟିଳ ତା କନା,
ବକ୍ର ଏ ଧନୁର ବାଣ ଦ୍ୱିତୀୟା ଚନ୍ଦ୍ରମା ।
ପଢ଼ା ଶେଷେ ଏକଧାଡି ହୋଇ ଠିଆ ହେବା,
ଗୁରୁଙ୍କୁ ଜୁହାର କରି ଧୀରେ ଚାଲି ଯିବା ।

୨୯ ଛଣିଫୁଲ ।

ପୀତ ଛଣିଫୁଲ ଭାଇ    କେ ଦେଖିବ ଆସ,
କେଡ଼େ ମନୋହର ଶୋଭା କରଛୁ ପ୍ରକାଶ ।
କାଳିଆ ଭ୍ରମରଟିଏ    ଗୁଣୁ ଗୁଣୁ ସ୍ୱରେ,
ଏକ ଫୁଲୁଁ ଉଡ଼ି ବସୁ-    ଅଛି ଅନ୍ୟ ପରେ ।
ବଗିଚ୍ଚାରେ ଅନ୍ୟ ଫୁଲ    ଅଛି ଯିନା ଫୁଟି,
ଏହା ରୂପ ସଙ୍ଗେ କହ    ସମାନ କେଉଁଟି ।
ଫୁଲ ମନୋହର ପୁଣି    ଗଛ ଉପକାରୀ,
ଏହା ଗଛୁଁ ଖୋଟ ମିଳେ ତହୁଁ ଲାଭ ଭାରୀ ।

---

୩୦ କାଞ୍ଚନଫୁଲ ।

ରେ ମୋର କାଞ୍ଚନଫୁଲ    ଝୁଲୁ କେତେ ଗଛଡାଳେ ?
ଝୁଲୁଁ ଝୁଲୁଁ ପଡୁଛୁ ତୁ    ପବନ ବହିବା କାଳେ ।
ସବୁଦିନେ ଶୋଭା ତୋର    ରହିବନା ଏହିପରି,
କଷି ହେଲେ ଫଳଟିର    ପାଖୁଡ଼ା ପଡ଼ିବ ଝଡ଼ି ।

---

୩୧ ବରଗଛ ।

( ଗୀତ ସହ ଅଙ୍ଗଚାଳନା )

ମୋଟ ବରଗଛ    ଯୋଡ଼ିଏ ଡାଳରେ
ବହୁତ ଡାଳିଆ ତାର,
ପତ୍ରର ଗୁଡ଼ିକ    ଚେପଟା ଚେପଟା
ସବୁଜ ବର୍ଣ୍ଣ ତାହାର ।
ଫଳମାନ ତାର    ପୁଞ୍ଜି ପୁଞ୍ଜିକିଆ
ଛୋଟ ଛୋଟ ଦିନା ଦେଶେ,

କେଡ଼େ ମନୋହର ରଙ୍ଗ ତାହାର ରେ
ଯୋହଲାର ମାଲୀ କି ସେ ?
ବରଗଛ ମୂଳେ ଛାଇ ବହୁତ ରେ
ପଥ ଗହଲ୍ୟା ତାର,
ଖରା ବର୍ଷା ସହ କେତେ ଛାଇ ଦେଇ
କରୁଅଛୁ ଉପକାର ।
ଡାଳୁଁ ଲମ୍ବି ଅଛୁ ଯେଉଁ ଓର ତହିଁ
ଝୁଲୁଥାଅ ମନସୁଖେ,
ହାତ ଯେବେ ଛାଇ ଖସରି ଯିବ ରେ
ପଡ଼ିଯିବୁ ମହାଦୁଃଖେ ।

---

### ୩୨ ( ବର୍ଷାକାଳରେ ) ଉଦ୍ୟାନ ଭ୍ରମଣ ।

ଆସ ଅହେ ଭାଇମାନେ ବୁଲିବାକୁ ଯିବା,
ବରଷା କାଳର ଶୋଭା କେମନ୍ତ ଦେଖିବା ।
ଦେଖ ଭାଇ ପଡ଼ିଆରେ ବଢ଼ି ସବୁଜ୍ ଘାସ୍,
କେଡ଼େ ମନୋହର ଶୋଭା କରୁଛି ପ୍ରକାଶ ।
ବଗିଚ୍ଚରେ ଜହ୍ନି, ଭେଣ୍ଡୀ କାକୁଡ଼ ଛଚଣା,
ମକା, ଛଣି, ବାଜରା ଏ ମନୋହର ସିନା ।
ଡେଙ୍ଗା ତାଳଗଛେ ଦେଖ କେତେ ତାଳ କାନ୍ଦି,
ଏହା ମଣ୍ଡ ଧର ତାଳ- ପିଠା ଖାଅ ରାନ୍ଧି ।
ଆତ, ଆମଡ଼ା, ଜାମୁର ଗଛେ ଦେଖ ଫଳ,
ପାଚିଲା ପିଜୁଳି, ଜାମୁ ଖାଇବାକୁ ଭଲ ।
ପୀଢ଼ାରେ ଦେଖ ରେ ଲାଉ ବୋଇତାଳୁ ଗଛ,

ମଞ୍ଚାରେ କାକୁଡ଼ି ବାଡ଼େ ଜହ୍ନି ଫୁଲ ଗଛ ।
ବିଲରେ ଧାନକିଆରି ପୂରିଛି ଜଳରେ,
ବନ୍ଧୁଛନ୍ତି କ୍ଷେତ କୃଷୀ ମହାହରଷରେ ।
ଖରାତେଜ କମିଅଛି ବଢ଼ୁଅଛି ଗଛ,
ବଡ଼ ସେ ଈଶ୍ୱର ଭାଇ ଅଛ ସବୁ ପଛ ।

---

୩୩ ଡାଳ ଲଗାଇବା ।

( ଗୀତ ସହ ଅଙ୍ଗଚାଳନା )

ସାବଳରେ ଗାତ ଖୋଳି ପୋତିଦିଏ ଡାଳ,
ତାର ମୂଳେ ଜଳ ଦିଏ ଘରୁଁ ଆଣି ଢାଳ ।
ଭୂଇଁ ରସ ଶୋଷି ଡାଳ କ୍ରମେ ଚେର ଦେଲା,
ଡାଳ, ପତ୍ର କୁଆଁ ଦେଇ କ୍ରମେ ବଡ଼ ହେଲା ।
ନବ ଡାଳ ବଢ଼ୁଥାଏ ଧରୁଥାଏ କଢ଼,
କ୍ରମେ କଢ଼ ବଢ଼ି ଫୁଲ ଫୁଟେ କି ସୁନ୍ଦର ।

---

୩୪ ବାଣି କଣ୍ଠା ।

( ଗୀତ ସହ ଅଙ୍ଗଚାଳନା )

ଝୁଲୁଅଛି ଝୋଟଗୋଛା ଦେଖ ଲମ୍ବ ହୋଇ,
ବସିଅଛି ତା ପାଖରେ ଠାକୁଆଟି ନେଇ ।
ଝିଙ୍କି ଦେଇ ଝୋଟ ଟାଣି ଯୋଡ଼ି ଦିଏ ବାଣି ।
ଠାକୁଆ ବୁଲାଇ ବୁଢ଼ା ପାଗ ଦିଏ ଟାଣି ।
ବେଳ ହୋଇଗଲେ ବୁଢ଼ା ଉପରକୁ ଚାହିଁ,
ଚାଲେ ଖୋସି ଝୋଟ ଯାଏ ଗାଧୋଇବା ପାଇଁ ।

### ୩୬ ଧାନ କଟା ।

### ( ଗୀତ ସହ ଅଙ୍ଗଚାଳନା )

ପାଚିଲା ଧାନକିଆରି   ଦିଶେ କି ସୁନ୍ଦର,
ଦାଆ ଧରି ନଇଁ ପଡି   କାଟେ ଚର ଚର ।
ହଳା ପରେ ହଳା ରଖେ   ବଡ ବଡ କରି,
କି ସୁନ୍ଦର ପଡିଅଛି   ପାଇ ଧାଡି ଧାଡି ।
କଷି କଷି ବିଡ଼ା ବାନ୍ଧି   ଗୋଛି ନେଇ ମୁଣ୍ଡେ,
ତର ତର ଚାଲିଯାଏ   ଖାଇବାକୁ ଗୁଣ୍ଡେ ।
ବର୍ଷଯାକ ଖଟି ଯେତେ   କଷ୍ଟ ପାଇଥାଏ,
ଧାନଖଳା ଦେଖି ଚାଷୀ   ସବୁ ଭୁଲି ଯାଏ ।

---

### ୩୭ ଶେଣା—ଖେଳା ।

ଶେଣା ଧରୁ   ପାଣି ବାନ୍ଧୁଁ,
ନଇଁ ପଡି   ସିଧା ହେଉଁ ।
ପାଣି ମାଡି   ଯାଏ ବିଲ,
କ୍ଷେତ ଥିଲେ   ସମତୁଲ ।
ଠେକା ଯାଉ—ଛୁଟି ତରଳି,
ଗଛ ଯାଉ—ଅଛି ହଳ ।
ଭୂଇଁ ଶୋଷୁ—ଅଛି ଜଳ,
ଗଛକୁ ସେ   ଦେବ ବଳ ।
ଗଛ ବେଗେଁ   ବଢ଼ି ଯିବ,
ବହୁତ ଫଳ—ଫଳିବ ।
ବାଇଗଣ   ଲାଉ ରେ,
ତରକାରି   ଖାଇଁବେ ।

୩୭ ଢେଣ୍ଡାଖେଳ ।

ବଗିଚାରେ ଢେଣ୍ଡା ମାରି    ମାଳି ବାନ୍ଧେ ଜଳ,
ଏତ ଭଲ ଅମ୍ଭ ଦେଶେ    ପାଣିବୁହା କଳ
ବାହା ବାହା ଢେଣ୍ଡା କଳି    କୂଅଜଳ ନେଇ,
ବଗିଚାରେ ଗଛମୂଳେ    ପାରୁ ଛୁଞ୍ଚ ଦେଇ ।
ଠାଣି ଅଣି ଢେଣ୍ଡାବାଁଶ    ବୁଡ଼ାଇଣ ଜଳେ,
ଗୁଣ୍ଡେ ଗୁଣ୍ଡେ ଟେକି ଦିଏ    ଉଠାଇଣ ବଳେ ।
ନୋଧା ମୁଖେ ଢାଳି ଦିଏ    ମାଡ଼ି ଯାଏ ତଳେ,
ରସ ଶୋଷେ ଚେର, ଗଛ    ବଢ଼ୁଥାଏ ବଳେ ।
ବଡ଼ ହୋଇ ଗଛମାନ    କେତେ ଫଳ ଧରେ,
ତୋଳୁଥାଏ ମାଳୀବୁଢ଼ା    ବଡ଼ ଆନନ୍ଦରେ ।

---

୩୮ କରତ-ଖେଳ ।

ମୁଣ୍ଡୀ-କାଠ ଠିଆହୋଇ,
ଦେଇଛନ୍ତି ମୁଣ୍ଡ ଦେଖାଇ,
ଦାନ୍ତୁରି କରତ ନେଇ,
ପଟା ଚିରୁଛନ୍ତି ବଢ଼ାଇ ।
ଠେଲି ଦେଇ ଟାଣି ଅଣେ,
ଏ ଭଲି ଉପାୟ ଜାଣେ ।
କର୍ଣ୍ଣ କାଟେ ଚର ଚର,
ଗୁଣ୍ଡି ପଡେ ଝର ଝର ।
ଦାନ୍ତୁରି କରତ ଧାର,
ଏଭଳି ଦାନ୍ତ କାହାର ।

### ୩୯ ପିଅନ୍-ଖେଳ ।

ମୁଁ ଡାକପିଅନ ଆଣି-　　ଅଛି ଟଙ୍କା ଚିଠି,
ବେଗେଁ ଆସ ବାଣ୍ଟିଦେବ　　ଯାହା ଯାର ଅଛି ।
ନିଅ ଖବରକାଗଜ　　ବଡ଼ ବାବୁଙ୍କର,
ପୋଷ୍ଟକାର୍ଡ ଲଫାପା ଏ　　ଅଟଇ ତୁମ୍ଭର ।
ଏ ଖଣ୍ଡି ବେରଙ୍ଗ ଚିଠି　　ଘନା ଦାସ ନିଅ,
ମାସୁଲ ପଇସା ଭାଇ　　ବେଗକରି ଦିଅ ।
ଏ କାହାର ମନିଅର୍ଡ　　କିଏ ହରିଦାସ ?
ଲେଖି ନ ଜାଣିଲେ ଭାଇ !　　ସାକ୍ଷୀ ଦେନି ଆସ ।
ଟିକଟ କାର୍ଡ ନେବ କିଏ ?　　କାର ଦରକାର,
ଢେର କାମ ଯିବ ବାବୁ　　ଜୁହାର ଜୁହାର ।

---

### ୪୦ ବଲ କ୍ରୀଡ଼ା ।

ଗଡ଼ି ଗଡ଼ି ଯାଏ ବଲ,
ଗଡ ଯାଉଥାଏ ବେଲ
ଗୋଟିଏ ପାଖ　　ଯାହାର ଅଛି
ସେହି ଗଡ ପାରେ ଭଲ ।
ଇଟାର ଗୃହକୋଣିଆଁ,
ତା କୋଣ ସବୁ ମୁନିଆଁ,
ଛଅ ପାଖ ତାର　　ସେ ଗଡ ନ ପାରି
ହୋଇ ପାରେ ଏକା ଠିଆ ।
ବାଉଁଶର ପବ, ନଳି,
ଏହି ଯେ ସୁନାରି ଫଳ
ତିନି ପାଖ ତାର　　ସେ ଗଡି ପାରନ୍ତି
ହୋଇଣ ଉପର ତଳ ।

### ୪୧ ବୀଜ ଲଗାଇବା ।

### ( ଗୀତ ସହ ଅଙ୍ଗଚାଳନା )

ବୋଇତାକୁ ବୀଜଟିଏ    ପୋତି ଦେଲି ତଳେ,
ମାଟି ଫୋଡ଼ି ଉପରକୁ    ଉଠିଲା ସେ ବଳେ ।
ଡାଙ୍କ ଦଣ୍ଠା ମେଲି ଦେଲା    ଦୁଇଆଡ଼େ ଭାଇ,
ପବନରେ ସେ ଦୁଇଟା    ଝୁଲେ ଖିପି ଯାଇ ।
ଟେକି ଦେଲି ଉପରକୁ    ମାଡ଼ିଲା ସେ ଚୂଳେ,
କି ସୁନ୍ଦର ଦେଖାଯାଏ    ଫୁଲ ଫଳ ଡାଳେ ।
ନଉ, ନଉ ବଢ଼ି କଷି    ପାକଳ ହୋଇଲା,
ଗଡ଼ିଯାଏ ଗଡ଼ି ଆସେ    ଦେଖ୍ ରେ ଭାଇ ଭଲ ।

---

### ୪୨ ଅଙ୍ଗଚାଳନା ।

ବସୁଥିଲେ ବନମାଳୀ    ଅଣ୍ଟୁଭର୍ ଦେଇ,
ବଳଦ ଅସିଲା ମାର    ସିଂହ ଯୋଡ଼େ ନେଇ ।
ବେଗେ ଅସିବାରୁ ସେତ    ଗଲୁଣି ପଳାଇ
ଏବେ ସୁଖେ ଭନଥର    ଉଠ ବସ ଭାଇ ।

---

### ୪୩ ବାଇଗଣ ।

ମୁହିଁତ ବୃକ୍ଷର ଥଳ    ରକ୍ଷା କରେଁ ବୀଜ,
ବହଳ ରସ ଓ ଚୋପା    ଦ୍ୱାରା କରି ସଜ ।
ମୋ ଭିତରେ ବୀଜଗଣ    ଥାନ୍ତି ନିର୍ଭୟରେ,
ସେଥିପାଇଁ ପୁଷ୍ଟ ମୋତେ    ରଖେ ଯତନରେ ।

ଶିଶୁକାଳେ ବଳ ସବୁ ମୋତେ ବେଢ଼ିଥାଏ,
ମୁହିଁ ବଡ଼ ହେଲେ ତାହା ଶୁଖି ଖସି ଯାଏ ।
ମୋର ଭେଣ୍ଟ ପବ ଟକ୍କ କଣ୍ଠାରେ ଯନ୍ତ୍ରଛ,
ମୋର ଅସ୍ତ୍ର ହୋଇ ତାହା ସାଧେ ବହୁ ହିତ ।

## ୪୪ ଧାନ୍ୟ ।

ଦେଖ ଭାଇ ଆମ୍ଭର ଯେ ପ୍ରଧାନ ଆହାର,
ତାକୁ ଯୋଗାଇବା ପାଇଁ ଧାନ୍ୟ ଦରକାର ।
ଟଙ୍କା ସୁନା ଗାଡ଼ ଗାଡ଼ ଥିଲେ ଭାଇ ଘରେ,
ଧାନ ନ ମିଳିଲେ ସେ କି ଜୀବ ରଖି ପାରେ ?
ଛୋଟ ଚାପଗଛେ ଦେଖ ଫଳେ ଏହି ଧାନ,
ଅଉ କିଏ ଉପକାରୀ ଏହାର ସମାନ ।
ଯତନରେ ଏହା ଚାଷ କରିବା ସକଳେ,
ମୂଳ ଏ ଆମ୍ଭର ଅନ୍ୟ ଚାଷ ଏହା ତଳେ ।

## ୪୫ ଗୀତ ସହ ଅଙ୍ଗଚାଳନା ।

### ( ଗୋଇଠି ଠେକବା )

ଗାଆଁ ଠାରୁ ଖାଲ ବାଲ,
ଉପରେ ଉଚ୍ଛୁଳୁ ଚଳ ।
ବଲ ମୋତେ ଦଶୁନାହିଁ,
ଗୋଇଠି ଠେକନ୍ତି ମୁହିଁ ।
ଖାଲ ପୂରିଅଛି ଜଳେ,
ଗୋଇଠି ପକାଅ ତଳେ ।
ଡେଇଁ ଡେଇଁ ବେଙ୍ଗ ଯାଏ,
କୀଟ ପତଙ୍ଗ ସେ ଖାଏ ।

### ୪୬ ଶ୍ରେଣୀଗଠନ ବିଷୟକ ଅଙ୍ଗଚାଳନା ।

ସିଧା ହୋଇ ଠିଆ ହୁଅ,
ଛଡ଼ା ଛଡ଼ା ହୋଇ ରୁହ ।
ଆଗେ ପଛେ ତାଲ ମାରି,
ଗଣ ଏକ ଦୁଇ ତିନ୍ ଚାର ।୧।
ଅଣ୍ଟା ପରେ ହାତ ଦେଇ,
ଚାଲ ଭାଇ ନଇଁ ନଇଁ ।
ବୁଢ଼ା ଚାଲେ ଏହିପରି,
ହାଟକୁ ସଉଦା କରି ।
ବାଟୋଇକୁ ସେ ଦେଖିଲୁ,
ହାତ ମେଲି ଓଗାଳିଲୁ ।
ତାର ସଙ୍ଗେ ଗପ୍‌ସପ୍
କରି ଚାଲେ ଝପ୍ ଝପ୍ । ୨ ।
ଦୁଇହାତ ଉପରକୁ ଟେକ,
ଆଣି ତାହା ଅଣ୍ଟାଠାରେ ରଖ ।
ଦୁଇହାତ ବେଗେଁ ସିଧା କର,
କର ଏହା ପୁଣି ଚାରିଥର । ୩ ।

---

### ୪୭ ରସ ।

ମଧୁର ଅଙ୍ଗୁର ରସ ପାଚଲା ପନସ
ମହୁ ଚାଟିନିଏ ଶିଶୁ ହୋଇ ହସ ହସ ।
ଅମଡ଼ା ତେନ୍ତୁଳି ଟେଶି ବଡ଼ ଖଟା ଲାଗେ,
ପାଟି ପୋଡ଼ିଯାଏ ଲଙ୍କା— ମରିଚର ଆଗେ ।

ଲମ୍ବ କୋଚିଲାର ଫଳ     ଆଉ ଚିରାଇତା,
ଖାଇବାକୁ ଭଲ ନୁହେଁ     ଲାଗେ ସେତ ପିତା ।
କଷା କଷିକଦଳୀ ରେ     କଷା ଲାଗେ କେନ୍ଦ,
ଯେ ଦେବ ମଧୁର ଫଳ     ସେହୁ ମୋର ବନ୍ଧୁ ।
ଜୀଭ ଏକା ଜାଣିପାରେ     କିଏ ପିତା କଷା,
ସୁଆଦ ବାରିବା ଭାଇ     ଜିଭର ବେଉସା ।

---

୪୮ ପଇଡ଼ ।

ଗଛ ବାହୁଙ୍ଗା ସନ୍ଧିରୁ     କାନ୍ଦି ବାହାରଇ,
କାନ୍ଦିରେ ଫଳ ଗୁଡ଼ିକ     ସୁନ୍ଦର ଦିଶଇ ।
ଫଳମାନ ଦିଶୁଥାଏ     ସବୁଜ ବରନ,
ତଳେ କେବେ ପଡ଼େ ନାହିଁ     ନ କଲେ ଛେଦନ ।
ଶଂସ ଓ ଜଳକୁ ରକ୍ଷା     କରିବା କାରଣ,
ଉପରେ ଥାଏ ବକ୍କଳ     ଖୋପା ଆବରଣ ।
ସଢ଼ଇ ଧାରଣ କରେ     ଶଁସ ଆଉ ଜଳ,
ବିଚିତ୍ର ବିଧିର ସୃଷ୍ଟି     ନଡ଼ିଆର ଫଳ ।

---

୪୯ ସଡ଼କ ।

ପଡ଼ିଛି ସଡ଼କ ଗଡ଼ି     ଯାଉଛି ଶଗଡ଼,
ତା ପଛରେ ଘୋଡ଼ାଗାଡ଼ି     ଯାଏ ଧଡ଼ ଧଡ଼ ।
ଫଳ, ଫୁଲ, ଧାନ, ରବି—ଶସ୍ୟ ନାନା ଜାତି,
ଯାଉଛି, ଅସୁଛି ଦେଖ     ତହିଁ ଦିନ ରାତି ।

ଯାଉଛନ୍ତି ଆସୁଛନ୍ତି   ନାନା ଦେଶ ଲୋକ,
ଦିନ ରାତି ସଡ଼କରେ   ପଡ଼ିଛି ଅଲୋକ ।
ସଡ଼କ ପାଖରେ ଦେଖ   ବସିଛି ଦୋକାନ,
କେହୁ କିଣେ ଜଳଖିଆ   କେବା ଗୁଆ ପାନ ।
ସଡ଼କ ବାନ୍ଧିଛି ଭଲ   ସବୁଦିନ ପାଇଁ,
ଚାଲିଲେ ଖରା ବରଷା   କିଛି ବାଧେ ନାହିଁ ।
ଯେଉଁଠାରେ ସଡ଼କ ଥହିଁ   ଚାଲିବା ସହଜ,
ସଡ଼କ ନ ଥିବା ସ୍ଥାନ   ବଡ଼ ଅସହଜ ।
ସଡ଼କର ରାଜଦାଣ୍ଡ   ସେ କରାଇଛନ୍ତି,
ରାଜା ସବୁବେଳେ ପ୍ରଜା   ହିତରେ ଅଛନ୍ତି ।

---

### ୫୦ ଭଉଁରି-ଖେଳ ।

(ଗୀତ ସହ ଅଙ୍ଗଚାଳନା)

ହାତ ଧରାଧରି   ଭଉଁରି ଖେଳ,
ଖେଳିବା ଆସ ହେ   ହୋଇଣ ମେଳ
ଧୀରେ ଧୀରେ ବୁଲି   ହାତକୁ ଧରି,
ଖେଳନ୍ତି ଯେପରି   ଚକା ଭଉଁରି ॥
ବୁଲୁଁ ବୁଲୁଁ ବେଗେ   ବସିପଡ଼ିବା,
ଉଠି କରି ପୁଣି   ପୁଣି ବୁଲିବା ।
ଉଠିବା ବସିବା   ସର୍ବେ ଥର ଚାରି,
ଶେଷେ ତାଳି ଦେଇ   ଯିବା ବାହାରି ।

---

Printer S. N, Mohammad Edward Press Cuttack 1915

ଦ୍ରଷ୍ଟବ୍ୟ :—

ମୋ[redacted]ଦ୍ରିତ [redacted] ଶୈଶବ-ଗୀତିକା ଏବଂ କୁମୁଦିନୀ ନାମ୍ନୀ ପୁସ୍ତିକା ଦ୍ୱୟ କ[redacted]ବ[redacted] ନିମ୍ନଲିଖିତ ପୁସ୍ତକାଳୟମାନଙ୍କରେ ମିଳେ ।—

କଟକ ବାଙ୍କାବଜାରସ୍ଥ ଏଡ଼ୱାର୍ଡ଼ ପ୍ରେସର ପୁସ୍ତକ ଦୋକାନ, କଟକ ବାଲୁବଜାରସ୍ଥ ଶେଖ୍ ନଜର୍ ମହମ୍ମଦଙ୍କ ସହଯୋଗୀ ସମିତି ବୁକ୍‌ଷ୍ଟଲ ଏବଂ ମାଣିକ୍‌ଘୋଷ ବଜାରସ୍ଥ ଶ୍ରୀଯୁକ୍ତ ରାଧାକୃଷ୍ଣ ବସୁ ମହାଶୟଙ୍କ ପୁସ୍ତକାଳୟ ।